ଶ୍ରୀମତୀ ଅନ୍ନପୂର୍ଣ୍ଣାଙ୍କ ଦ୍ୱାରା

ବିରଚିତ ।




ମାନନୀୟ ଶ୍ରୀ ୟୁ. ବରକୋଡାଧୀଶ୍ୱର ଏବ

ଶ୍ରୀଯୁକ୍ତ ଚନ୍ଦ୍ରମୋହନ ମହାରଣା ବି, ଏଙ୍କ

ଆନୁକୂଲ୍ୟରେ

ଶ୍ରୀ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା

ପ୍ରକାଶିତ ।

---

ଖ୍ରୀ: ୧୯୦୪

**Printed at the Mardaraj Press.**
**RAMBHA.**

ମୂଲ୍ୟ ଏକଅଣା ମାତ୍ର ।




## ବ୍ରହ୍ମ ପ୍ରାର୍ଥନା ।

ନମସ୍ତେ ନମସ୍ତେ ପରଂବ୍ରହ୍ମ ଅନୁପମ
ଅକ୍ଷୟ ଅବ୍ୟୟ ରୂପ ଅଟ ସନାତନ ।
ନିର୍ବିକାର, ନିରଞ୍ଜନ, ପ୍ରଭୁ ଦେବବର
ନାହିଁ ତବ ରୂପ ରେଖ ନିଦର୍ଶେ କପଣ ।
ତୁମ୍ଭେ ପରଂବ୍ରହ୍ମ ରୂପ ଅଟ ଜ୍ୟୋତିର୍ମୟ
ନିୟନ୍ତା ଅଟଳ ଅଟ ଅମୂର୍ତ୍ତି ନିଷ୍କ୍ରିୟ ।
ବାସ କରିଅଛ ତୁମ୍ଭେ ଅଣୁ-ପରମାଣେ
କେବଳ ବ୍ୟାପକ ହୋଇ ଅଛ ସର୍ବସ୍ଥାନେ ।
'କେବଳ ଅଟଇ ଦଶ ଅଙ୍ଗୁଳ ବିସ୍ତାର
ସେଥିପରେ ଅଟଇ ଯେ ଅନନ୍ତ ଅପାର ।
ତାହାର ଉପରେ ରହି ଅଛଇ ହୃଦୟ
ଦଶ ଯେ ଅଙ୍ଗୁଳି ଅଟେ ତଥି ଅନୁମେୟ ।
•ଜନେ ଜଣ ଅଛ ପରଂ-ବ୍ରହ୍ମ ସେହି ସ୍ଥାନେ
ଯୋଗିଏ ଗୋଚର କରୁଛନ୍ତି ଧ୍ୟାନମାନେ ।
ବ୍ରହ୍ମଜ୍ଞାନୀ ଚାହିଁପାରେ ବ୍ରହ୍ମ ନିଜ ସ୍ଥାନ
ବ୍ରହ୍ମରନ୍ଧ୍ରେ ଛତ୍ରରଖି କରୁଥିଲେ ଧ୍ୟାନ ।

ଅହେ ନିରୂପମ ବନ୍ଧୁ ଅଟ ଜ୍ୟୋତିସ୍ମର
ହୃଦ ମଧ୍ୟେ ବାସକର• ପରମେଶ୍ୱର ।
ଅକ୍ଷୟ ଅବ୍ୟୟ ପ୍ରଭୁ ନାହିଁ ରୂପ ବର୍ଣ୍ଣ
ଘଟ ଘଟ ଭେଦ ଦିଶେ ଯାହେ, ନିରଞ୍ଜନ ।
ଅସ୍ଥୂଳ ଅରୂପ ହୋଇ ଦିଶେ ଅଗ୍ନିମନ୍ତ
ସମ୍ପୂର୍ଣ୍ଣରେ ରହିଅଛ ସକଳ ହୃଦୟ ।
ତୁମ୍ଭ ତେଜ, ଜଳସ୍ଥଳ ପୁଣି ଆକାଶରେ
ବ୍ୟାପିଣ ରହିଅଛ ସର୍ବ ଲତା ତରୁବରେ ।
ରୂପ ବିହୀନ ହେ ପ୍ରଭୁ ଜ୍ଞାନ ଅପ୍ରମେୟ
ଅନ୍ଧକାର ନାଶିଦିଅ ହୋଇ ଜ୍ୟୋତିର୍ମୟ ।
ପରଂବ୍ରହ୍ମ ଜ୍ଞାନମୟ ଅହେ ସନାତନ
ବ୍ରହ୍ମ ଉଦ୍ଧେ, ଉଦ୍ଧ ସର୍ବ ଜଗ ନିରୂପଣ ।
ତୁମ୍ଭ ଜ୍ଞାନ ବଳୁ ଭକ୍ତ ହୋଇଛନ୍ତି ଉଦୟ
ଏହା ଜାଣି ମୂଢ଼ମନ, ନକରଇ ଲୟ ।
ନ ଥାଏ ତୁମ୍ଭର କିଛି ପାପ ପୁଣ୍ୟମାନ
ଭକ୍ତଙ୍କ ସ୍ମରଣ କରୁ ଜ୍ଞାନଙ୍କର ଦାନ ।
ଅଟ ଅହେ ପରଂବ୍ରହ୍ମ ସକଳରେ ସାର
ଜ୍ଞାନ ବୀଜ ଅପ୍ରଭୁ ଭକ୍ତଙ୍କ ଆଧାର ।
ଅହେ ପରଂବ୍ରହ୍ମ ଅଛ ହୃଦୟ କନ୍ଦରେ
ଘଟ ଘଟ ଜ୍ୟୋତି ଦିଶି ଆଲୋକକୁ କରେ ।

ସେହି ପରଂବ୍ରହ୍ମ ରୂପ ଅଟେ ପରାତ୍ପର
ଜ୍ଞାନ ଦୀପ ଜାଳି ସେବା ଦେଉଛ ସତ୍ଵର ।
ଜ୍ୟୋତିର୍ମୟ ହେଲେ ସୁଦ୍ଧା କେବଳ ଅଚଳ
ସ୍ଥୂଳ ରୂପୀ ହୋଇଥାଇ ବ୍ୟାପିଛ ସକଳ ।
କେବଳ ଅଟ ହେ ପ୍ରଭୁ ପରଂବ୍ରହ୍ମ ଜାଣ
ଏହିତ ମନର ମଧ୍ୟ ଅଟ ବେଗବାନ ।
ଷଡରିପୁ ମାନଙ୍କର ଅଟତ ମର୍ଦ୍ଦନ
ପ୍ରସନ୍ନରେ ଜ୍ଞାନ ବୀଜ ବୁଣ ଘନ ଘନ ।
ସଙ୍ଗ ହେତୁ କର୍ତ୍ତା ପ୍ରଭୁ ଅଟ ଭଗବାନ
ସେବା ସାଧନେ ଭକ୍ତ କରୁଅଛନ୍ତି ଦାନ ।
ଜ୍ଞାନ ଅନୁଷ୍ଠାନେ ଲଭୁ ଅଛନ୍ତି ନୟନ
ଏହା ଯାକୁ ପ୍ରାପ୍ତି ନୁହେ ସ୍ଥିର ନୁହେ ମନ ?
ଅନ୍ଧକାରେ ପଡିଥାନ୍ତି ହୋଇ ଉଦ୍ଭ୍ରାନ
ଡାକୁଲେ ରୋଦନ କରେ ନସରଇଂଦନ ।
କାଳତ ପ୍ରଳୟ ଅଟେ ଅଗ୍ନିର ଅଧାର
ତାକୁ କେହି ଏଜଗତେ ଦେଇବ ନପାର ।
ଇଛାଅନୁଯାୟୀ ଦଣ୍ଡ ବହିବ ଜୀବନେ
ଜ୍ଞାନ ହୀନେ ଦଣ୍ଡ ଲଭୁଥିବ ଅକାରଣେ ।
ଜାଜ୍ଜ୍ୱଲ୍ୟ ଜ୍ୟୋତିକ ରୂପ ସେହେବେ ଅନ୍ଧାର
ଦୁଃଖାନଳେ ବସିଥାଏ ସଦା ଭବଦ୍ୱାର ।

ସକଳ ହୃଦରେ ଥାଆନ୍ତି କହୁଛନ୍ତି ବ୍ରହ୍ମ
ଜାଣିତେ ନ ଚିହ୍ନେ ତାଙ୍କୁ ଏହି ମୂଢ଼ମନ ।
ଯେବେ ସ୍ଥିର ଭାବେ ଚିନ୍ତିବ ଜ୍ୟୋତିର୍ମୟ
ଯାଏ କ୍ଳେଶ ନୋହି ଭୋଗ ସ୍ପୃହା ହେବ ଲୟ
ଭାବନା କରିଲେ ଜ୍ଞାନୀ ବ୍ରହ୍ମ ନିରନ୍ତରେ
ଅଛନ୍ତି ଦୂରରେ ଅବା ଥିବା ନିକଟରେ ।
କଷ୍ଟ ହେଲେ ନାହିଁ ପୁଣି ତାହିଁ ଅଭିପ୍ରାୟର
ଅଛନ୍ତି ସେ ନିର୍ବିକାର ସକଳ ସ୍ଥଳର ।
ଘାତ୍ମା ଆତ୍ମା ମିଶାଇଣ ଜାଣଇ ସକଳ
ଜ୍ଞାନ ମୂଳାଧାର ଚିହ୍ନି ହେବ ଭୂମଣ୍ଡଳ ।
ତେବେ ବ୍ରହ୍ମାଣ୍ଡରେ ଦେଖି ପାରେ ପରଂବ୍ରହ୍ମ
ଜୀଘତ ପାଇବ ମଧ୍ୟ ହୃଦୟେ ଗମନ ।
ସେବା କରିବାକୁ ଥିବ ଯେବେ ଜ୍ଞାନ ବଳ
ଭୁଞ୍ଜ ଜ୍ଞାନ ଲଭି ବୃଥା ହୋଇବ ବିକଳ ।
ଜ୍ଞାନାଳୁଚ ହେଲେ ମଧ ସେହି ଜ୍ଞାନବାନ୍
ନ କରନ୍ତି କେବେ ହେଲେ ଅଣୁଠିକ ଜ୍ଞାନ ।
ଆତ୍ମା ଏକା ଅଟନ୍ତି ସେ ସର୍ବ ବସ୍ତୁ ରୂପୀ
ଜ୍ଞାନ ବଳେ ତାଙ୍କୁ ଏକା ଜାଣିବ ଯଦ୍ୟପି ।
ବ୍ରହ୍ମ ରନ୍ଧ୍ର ସ୍ଥାନେ ସଦା ପଡ଼ିବ ସୋପାନ
ଅନାହତେ ଜ୍ୟୋତିର୍ମୟେ କରୁଥିବ ଧ୍ୟାନ ।

ତେବେ ସେହି ସମ୍ବାଦରେ ଦେବ ଜ୍ଞାନୀଗଣ
କହନ୍ତି ସେ ଢଙ୍ଗେ ହେଲେ ମୋହେ ଅଚେତନ
ସେହିପରି ଗାମ୍ହା ଦେଖି ପାରେ ସର୍ବ ବ୍ୟାପି
କ୍ଷିତରେ ପାପ ତାଙ୍କୁ ନ ସ୍ପର୍ଶେ କଦାପି ।
ଜ୍ୟୋତିର୍ମୟ ପ୍ରଭୁ ରୂପ ଅଟେ ଅଶରୀରୀ
ବଶିଥାନ୍ତି ଘୂପେ ଠୂଳ କରି ସର୍ବ ଶିରୀ ।
ଅପରୂପ ସ୍ୱୟମ୍ଭୂ ବ ମନର ନିୟନ୍ତା
ଜଗଦୀଶ ସ୍ୱାମୀ ଅଟ ସକଳ କରନ୍ତା ।
ଭକ୍ତଙ୍କର ହୃଦେ ପାନ୍ତି ଅଛୁ ଭଗବାନ
କରୁ ଅଛ ନିରନ୍ତରେ କଲ୍ୟାଣ ବିଧାନ ।
ଦେଖୁଅଛ ପ୍ରତ୍ୟକ୍ଷରେ ଚଳ ଯେ ପ୍ରଚଳ
ଜ୍ଞାନ ଅନୁସାର ପ୍ରଭୁ ଦେଉଅଛ ଫଳ ।
ଜ୍ଞାନ ବଳେ ପ୍ରାପ୍ତି ହେଉ ଅଛ ଦୟାମୟ
ସୁପ୍ରସନ୍ନେ ଭକ୍ତ କର୍ଣ୍ଣେ ରଖି ଅଛ ଲୟ ।
ନୟନେ ରଖିବୁ ତାଣି ଜ୍ୟୋତିର ପ୍ରତାପ
ଚକ୍ଷୁ ଖୋଲି ଦେବା ମାତ୍ରେ ପ୍ରବଳ ବିଳାପ ।
ଘନ ଘନ ଅଗ୍ନି ତାପ କଳବ ଦର୍ଶନ
ସର୍ବ ପାପ ତୃଣ ପରି ହେବ ବିଧ୍ୱଂସନ ।
ଶୁଦ୍ଧ ମନେ ଯେଉଁ ଜ୍ଞାନୀ ପୂଜନ୍ତି ସେ ତେଜକୁ
ଭୀତ ଥାଉ ନ ଉପୁଜେ ଭାବ ମରଣକୁ ।

ଅନ୍ତରରେ କରୁ ଥିବି ଭକ୍ତି ଉପାସନା
ସୁଖରେ ଅମୃତ ନଦୀ ନିଭେଂ ମନ୍ଦାମନା ।
ବଳସ୍ତୁ କାରଣ ଅଛ ସକଳ ହୃଦର
ଭକ୍ତଙ୍କ ଭକ୍ତି ଏବା ଐଶ୍ୱର୍ଯ୍ୟ ତୁମ୍ଭର ।
ଏହି ଜଗତରେ ତବ ଜ୍ୟୋତିର୍ମୟ ପାଦେ
ବ୍ୟାପିରହି ଅଛ ପ୍ରଭୁ ସଙ୍ଗ ବର୍ଣ୍ଣ ଗାନେ ।
ମତେ କିପାଁ ବାରେକ ନ ଦିଅ ଦରଶନ
ଲୁଚୁଛ, ମୋଚନ କର ହୋଇ ଆବରଣ ।
ଆହେ ପରଂବ୍ରହ୍ମ ଅଟ ଜଗତ ପୋଷକ
ହିତ ସ୍ୱରୂପରେ ସର୍ବେ ହୋଇଛ ପାଳକ ।
ହେବେ କି ଅଦୃଶ୍ୟ ହୋଇ କରୁଛ ଗମନ
ଭକ୍ତଙ୍କର ହୃଦେପଦ୍ମ ତୁମ୍ଭର ଆସନ ।
ଜ୍ଞାନର ଭଣ୍ଡାର ରଣ କର ଅନ୍ତ ଯହି
ରସ ବରଷାଇ ସୁଖୀ କରୁଅ ଜୀବନ ।
ଏସବୁ ପ୍ରଭୁଙ୍କର ଯାହା ନ ଦେଖଇ ମୂର୍ତ୍ତି
ତପସ୍ୱୀଙ୍କେ ବସୁଜତି କରୁପେ ଥକୃତ ।
ଦେବଗନ୍ତ୍ର ନମ୍ରେନ ବାରେ କରନ୍ତି ଦର୍ଶନ
ବିନମ୍ର ଭାବରେ ତୁହିଁ କରନ୍ତି ବନ୍ଦନ ।
ଘେନେ କୃପାସିନ୍ଧୁ ବାରେ କୃପା କର ଘେଉ
ମୋର ଘଟେ ଯେଉଁସ୍ଥାନେ ଅଛି ପ୍ରାଣ ବାୟୁ ।

ସେମାନଙ୍କୁ ପାର କର କରୁଣା ଦୃଷ୍ଟିରେ
ଚଞ୍ଚଳ ନୋହୁଁ ଯେସନେ ଅସ୍ଥିର ମତରେ ।
କଠିନ ହୃଦୟ ମୋର କୁଟିଳ ଏ ମତ
ଭକ୍ତି ହୀନ ହୋଇ ଅଛୁ ପାଷଣ୍ଡୀ ମୁଁ ଅତି ।
ସୁଧା ଜଳ ଢାଳି ଯେଉଁ ଅଟଇ ପବିତ୍ର
ସେ ଚରଣେ ଏ ଶରୀର ଭସ୍ମିଭୂତ କର ।
ସର୍ବେ ପୂର୍ଣ୍ଣ ରହିଅଛୁ ଆପଣାର ବୈଧେ
ଜ୍ଞାନ ଯତ୍ନେ ଶୀଘ୍ରେ ତାକୁ ବିନାଶ ହେ ହର ।
ନିର୍ଭୟରେ ତବ ପଦେ ପଶିବ ଶରଣ
ଏ ଶତ୍ରୁକୁ ନିଅଧୁଅ ହୋଇ ସୁପ୍ରସନ୍ନ ।
ଅବିରତେ ସୁଧାପାନ କରୁ ଏ ଜୀବନ
ଦିବା ନିଶି ସ୍ମରୁଥାଉ ଧ୍ୟାଇ ପରଂବ୍ରହ୍ମ
ବ୍ରହ୍ମପଦ ଅନୁଷ୍ଠାନେ ଯାଉ ମୋର ପ୍ରାଣ
ଦୟା କର ଦୟା କର ଦେବ ପଞ୍ଚବାଣ ।
ଦୂର ହେଉ ଦୂର ହେଉ ମୋର ମୂଢ଼ମତ
ଶରଣ ପଶିଲି ରକ୍ଷା କର ବିଶ୍ୱପତି ।

---

ନିଶିକାଳରେ ବୃକ୍ଷମାନଙ୍କର ଶୋଭା ।

ଧନ୍ୟ ବସୁନ୍ଧରେ ମାତଃ ମହିମା ତୋ ଧନ୍ୟ
ଧୀର ମୂର୍ତ୍ତି ଶାନ୍ତଶୀଳା ଭଲ ତୋ ପାଳନ ।

ସୁପ୍ରସନ୍ନ ହୋଇ ମାତଃ ପାଳୁଛୁ ଜଗତ
ଅହା ! କି ସରଳ ଅଟେ ତୋର ହୃଦଗତ ।
ମାତ୍ର ଗର୍ଭେ ଧରିନାହୁଁ କି କରୁ ପାଳନ
ନିରନ୍ତରେ କରୁଥାଉ ପ୍ରଫୁଲ୍ଲ ବଦନ ।
ଧନ୍ୟ ତୋର ସ୍ନେହ ଅଟେ ଧନ୍ୟ ତୋର ଭାବ
ପ୍ରେମଜଳେ ଭସାଉଛୁ ଚିତ୍ତ ହର ଜୀବ ।
ସର୍ବଜନ ଉଦ୍ଧାରୁଛୁ ମାତୃ ସ୍ନେହ ବହି
ନିରନ୍ତରେ ଉପଦେଶମାଳା କହି କହି ।
ବୀଜାଙ୍କୁର ବୁଣିଦେଇ ଅଛୁ କି ଯତନେ
ସନ୍ତାନର ଆଶା ସ୍ନେହ ଧରି ମନେ ମନେ ।
ବୀଜାଙ୍କୁର ବୁଣିଦେଇ ଅଛୁ, ନିରେକ୍ଷିଣ
ଚକ୍ଷୁରୁ ଲୋତକ ଧାର ଦେଉ ଗୋ ସିଞ୍ଚିଣ ।
ମନ ଶର ଲକ୍ଷ କରୁଥାଉ ହେବା ଲାଗି
ବୃକ୍ଷକ ଜୁଗାଇ ଅଛୁ ହୋଇ ତୁ ଉଲ୍ଲାସି ।
ପ୍ରେମଫଳ ସଞ୍ଚୁଥାଉ ଦେବା ଇଚ୍ଛା ରଖି
ଉଦ୍‌ବେଗକୁ ଅନୁରୂପେ ରଖୁ ଯତ୍ନେ ଯୋଖି ।
ସକଳ ହୃଦକୁ ବାନ୍ଧି ରଖିଛୁ ସ୍ନେହରେ
ଶୂନ୍ୟରେ ବସିଛୁ ମାତଃ ଅନନ୍ଦ ମନରେ ।
ଅହା ! କି ଯତନେ ପାଳୁ ବାତ୍ସଲ୍ୟର ମନ୍ତ୍ରେ
ଭଜେ ନଚାହିଁଣ ମାତଃ ପଡନ୍ତୁ ଭୂମନ୍ତେ ।

ଏପନ୍ତ କାଳରେ ସର୍ବ ଅଙ୍କୁର ଉଠିଲେ
ଅତ ପଲ୍ଲବର ଦ୍ୱୀପ ଶୂନ୍ୟକୁ ଗୃହିଲେ ।
ଅତଘନନ୍ଦିତ ହେଲ ଦେଖି, ତୁ ଜଯ୍ଯନେ
ବାଞ୍ଛାଫଳ ଫଳଗଲା ଭୋଦ୍ଦର ବହନେ ।
ଦେଖି ଦେଖି ବଢୁଛନ୍ତି ଉଲ୍ଲାସ ଭବରେ
ଅତ ସେ ଲଳିତ ଅଙ୍ଗ କ୍ଷଣେ ଚିତ୍ତ ହରେ ।
ଉପୂର୍ତ୍ତି କରିଣ ମାତଃ ଦେଖନ୍ତି ହରଷେ
ଜୀବର ଜୀବନ ବୋଲି ଭାବନ୍ତି ମାନସେ ।
ମାତୃ ସ୍ନେହ ପାଇ ସର୍ବେ ବଢ଼ନ୍ତି କ ଯତ୍ନେ
ପ୍ରେପିତ ହୋଇଲେ ସବୁ ସଂସାର କାନନେ ।
ଜଗତରେ ଜାତ ହେଲେ ବାନ୍ଧବଏ ମୋହ
କ୍ଷୁଧା ତୃଷା ଗର୍ଭେ ଭିତ୍ର କରୁଥାନ୍ତି କୋହ ।
ତାଙ୍କଠାରୁ ରୂପଣରେ ହୋଇକ ଉଦ୍ଧାର
ହୃଦ ସ୍ଥାନ ନଶ୍ୱରିକ କଷ୍ଟିତ ମୋତର ।
ମାତା ପିତା ଜାତକଲ ଅକଳ ମନରେ
ଜୀବକୁ ତୋଷିବ ହେତୁ ଜଗତ ମଧ୍ୟରେ ।
ଆଧାର ଅଟଇ ପିତା ଜୀବଙ୍କୁ ଉଦ୍ଧାର
ତା ବହନେ ଏତ୍ତ ଶକ୍ତି ହେବ କାରଣର ।
ଏତ୍ତପର ଭାବ ଭାବ ଜନନୀ ମନର
କାଣ୍ଡଳରେ ବସେ ଭାବେ ପ୍ରଭୁଙ୍କ ପଯ୍ଯର ।

ଦେଖୁ ଦେଖୁ ଭେଣ୍ଟୋବଣି ଧରଣ ତପନ
ଅକାଶରେ ଉଦେ ହେଲେ ପ୍ରତାପେ ବନ୍ଧନ।
ଛୋଟ ତେଜକର ବୃଷ୍ଟି ହୁଏ ଘନ ଘନ
ଜ୍ୟୋତି ଯୋଗୁଁ ସର୍ବ ଜୀବ ହୁଏ ଛନ ଛନ।
ମାର୍ତ୍ତଣ୍ଡ କରନ୍ତେ କଲେ ଅରୁଣକୁ ଧର
ରକ୍ତ ପ୍ରତିବିମ୍ବ ପ୍ରାନ୍ତେ ଦଶେ ସମ ସର।
ସାଗର ମଧ୍ୟରେ କବା ଜାତ କିନ୍ତୁ କୂପ
ଉଜ୍ଜ୍ୱଳ ପଡ଼ୁଛି କବା ଧର ଚନ୍ଦ୍ର ରୂପ।
କମଳନୀ ପ୍ରାଣନାଥ ହୋଇଲେ ଉଦୟ
ଆକାଶରେ ଛବିମୂର୍ତ୍ତି ଅତି ଜ୍ୟୋତିର୍ମୟ।
ସିନ୍ଦୂରର ଭେଙ୍କୋବ୍ରଣି ଦେ ସନ୍ଧ୍ୟା ପାଇବ
ଅତ କୋମଳାଙ୍ଗୀ ତନୁ ନ ଲଭିଣ ସୀକ।
ଭାସ୍କର ପ୍ରଭାବ ଦେଖି ମାତା—ବସୁନ୍ଧରା
ସେହନ କରଇ କରି ହାହା ! ସବ କର।
ପ୍ରାଣପତି ଭେଟ ଯୋଗୁଁ ଫୁଟିଲା କୁମୁଦ
ଛୁଟିଗଲା ପାପ ରଶ୍ମି ହେଲା ସେ ପ୍ରମୋଦ
ପତି ମୁଖ ଚୁମ୍ବି ରାମା ପ୍ରଫୁଲ୍ଲ ବଦନେ
ଦରଶନ କଲା ଏହି କୋମଳ ଜୀବନେ।
ଅତି ଉଲ୍ଲାସରେ ଫୁଟି ଛଡ଼ଇଲା ବାସ
ପ୍ରେମ ଗଦ ଗଦ ହୃଦେ ହୁଏ ଛେସ ଲାଳସ।

ଗ୍ରନ୍ଥଂ ଥିବା ଯାର ମନେ ହୁଅଇ ଆନନ୍ଦ
ପ୍ରେମ ଜଳେ ଝଲ ଝଲ କରୁଥାଏ ହୃଦ ।
ସକଳଙ୍କ ସୁଖ ବାଞ୍ଛା ଦେଖନ୍ତୁ ନୟନେ
ସୁଖ ଦୁଃଖ ଦେଖି ଦେଉ ଚଳନ୍ତୁ ବଚନେ ।
ଲୋକନାଥ ପଥେ ପଶି ଯାଆନ୍ତୁ ତପନ
ତାଙ୍କୁ ଦେଖି ବଢ଼ିରୁଛି ଏହୁ ପାପ ମନ ।
ଅସ୍ତ ରବି ଦେଖି କ୍ଳାନ୍ତ ହେଉଛି ଏସନ
ଗର୍ଭ ଅଟଇ କଅବା କଳଧର ସମ ।
ତଥିରେ କମଳ କବା ଫୁଟି ଉଠୁ ଅଛି
ପରମ ରସକୁ-ଦିବା ଉଲ୍ଲାସେ ଧଉଛି ।
ବ୍ରହ୍ମାଙ୍କୁ କି ବାସ କଲେ କମଳବର୍ଣ୍ଣ କାନ୍ତ
ବ୍ରହ୍ମାଣ୍ଡ ଭ୍ରମଣ କଲେ ଲଭିବେ କି ଶାନ୍ତି
ନାଭିଜାଲେ ଅରବିନ୍ଦ ଦିଶଇ କି ଶୋଭ
ମାଧବୀ ବେଶରେ ସର୍ବ ମନ ହରେ ଲୋଭି ।
କବା ସମାନ୍ତରୁ ଜଣେ ହୋଇ ଭକ୍ତିମତୀ
ଦେବତା ପୂଜିବା ପାଇଁ ଧାଉଁଛି ଚଉତ ।
ସୁବର୍ଣ୍ଣ ଥାଳରେ ରଖି ମନ୍ଦାର ସୁମନ
ସଯତନେ ଯାଉ ଅଛି ଫୁଲ୍ଲଇ ବଦନ ।
ଦେବୀ ପୂଜି ବର ପ୍ରାପ୍ତି ଲଭିବା କାମନା
ହୃଦୟରେ ଯାଙ୍କ କବା ଥିଲା ସେ ଲଳନା ।

ଯାତ୍ରୀଙ୍କ ଉଲ୍ଲାସରେ ଚଳ ଚଳ ନାରୀ
ପ୍ରେମ ଭରେ ନୟନରୁ ବନ୍ଧୁଙ୍କ ବାରି ।
ଅକଳଙ୍କ ଚନ୍ଦ, ମୁଖ ଦିଶଇ କି ଶୋଭା
ଦେବତାଙ୍କୁ ଗୃହେଁ କିବା ହୋଇଅଛି ଲୋଭା ।
ହେମ ମଧ୍ୟେ ମାଣିକ୍ୟ କି ହୋଇଅଛି ଖଚିତ
ଝିଟି ଝିଟି ଜ୍ୟୋତି ଯୋଗୁଁ ଚିତ୍ତ ବିମୋହିତ ।
କିନ୍ତୁ କିନ୍ତୁ ଶୀତଳରୁ ହୁଏ ଦୟା ବହି
ଏକାଗ୍ର ଚିତ୍ତରେ ରହେ ଧ୍ୟାନ ରୂପ ବହି ।
ଝର ଝର ବହୁଅଛି କିବା ପ୍ରେମ—ଝୋଲ
ଅତି ଯତ୍ନେ ପ୍ରଭୁପଦେ କରିବ କି ଢାଲ ।
ଏପରି ସଙ୍କେତେ ସମା ରହିଛି ଅନାଇଁ
ଠାକୁରଙ୍କ ମୁହଁ ମାତ୍ର ଜଣାଗଲା ନାହିଁ ।
ଅକୁଳ ହୋଇଣ ବାଳୀ ହୋଇଲା ନିରାଶ
କବରୀ କୁସୁମ ଶୋଭା ହେଲା ଅପ୍ରକାଶ ।
କାଳ ମାଡିଗଲା ଆସି ଚନ୍ଦ୍ର ବଦନରେ
ସୁବର୍ଣ୍ଣ ପ୍ରତିମା କାଳା ହୋଇଲା ସତ୍ୱରେ ।
ମନବାଞ୍ଛା ନ ପୂରିଲା ସମା—ଭଜନର
ପାମର ରାକ୍ଷସ କାଳି ଘୋଟିଲା ସତ୍ୱର ।
ଦେଖୁଁ ଦେଖୁଁ ଘୋଟିଗଲା ଆସି ଅନ୍ଧକାର
ନୟନେ ନୟନ ଠାବ ନହୁଏ କାହାର ।

ଅସ୍ତ ସେ ହୋଇଲେ ଯାଇ ପଶ୍ଚିମ ଦିଗରେ
ରବି ପ୍ରତିବିମ୍ବ କ୍ରମେ ଲୁଚଇ ସବ୍ରରେ ।
ତେଜକାନ୍ତି କଣ୍ଠ କଣ୍ଠ ହୋଇଯାଏ ହ୍ରାସ
ମଧ୍ୟାହ୍ନର ଶୋଭା ନେଲା ଚିର ଅବକାଶ ।
ମଳିନଭା ଯେବେ ହେଲା ତେଜ ଭାନୁଙ୍କର
କମଳିନୀ ତନୁ ଗୋଟି ହେଲା ନାରଖାର ।
ପତି ପଦ—କମଳରେ ରଖି ତାର ମନ
ପତି ମନ୍ତ୍ର ହୃଦେ ଧ୍ୟାଇ ବୁଜିଲା ନୟନ ।
ଯେତେବେଳେ ଅସ୍ତ-ହେଲେ ଜଗତର ନାଥ
ସେତେବେଳେ କମଳିନୀ ହେଲେକ ଅନାଥ ।
ନିଶିଆସି ପ୍ରବେଶିଲା ଦେଖାଇ ମାଧୁରୀ
ଜଗତରେ ଅନ୍ଧକାର ଘୋଟିଲାକ ପୂରି ।
ଅତ୍ୟନ୍ତ ସୁନ୍ଦରୀ ଶ୍ୟାମା ରମଣୀ—ରତନ
କୁରଙ୍ଗି ନୟନୀ କାଳାଂ ଚିତ୍ର ବିମୋହନ ।
ବୃକ୍ଷରେ ଚଢ଼ୁଥିଲେ ଗଣ୍ଡ ପେଚା କୋଲାହଳ
ତାହା ଶୁଣି ସଙ୍କହୃଦ ହୁଅଇ ଚଞ୍ଚଳ ।
ନାନାବିଧ ଜାଗି କୀଟ ପତଙ୍ଗ ଝିଙ୍କାର
ଝଙ୍କାର ଶବଦେ ମନ ନିଅନ୍ତୁ ଉଟାର ।
ନାନାବିଧ ଯନ୍ତ୍ର ଧରି ମିଶାଇ ସୂତରେ
ସଙ୍ଗୀତ କି କରୁଥିଲେ ଗାନନ ମଢରେ ।

ସଙ୍ଗୀତର ଭାବ ମାତ୍ର ନ ବୁଝିଲା ମନ
ନାଦାତ୍ମକ ସ୍ୱର ମାତ୍ର ଶୁଣେ ଅନୁକ୍ଷଣ ।
କବ ବର୍ଣ୍ଣୁଛୁ ମୁକେଁ ଏଥି ସାରତତ୍ତ୍ୱ
ହୋଇଥିବ ପଶୁ ବୋଲି ଦେଉଅଛୁ ମତ ।
ଜନୟାଙ୍କ ମାତା ଜବା ସସାର କ୍ଷେତ୍ରରେ
ସନ୍ତାନଙ୍କୁ ପାଳୁଥିଲା ଜାଗ୍ରତ ମନରେ ।
ଏବେ ସେହ ମାତା ଜବା ବଦାଯୁ ଗ୍ରହଣ
ନେଇ ଜବା କରୁଅଛୁ ସଙ୍ଗୀତ ଗାୟନ ।
ନୋହିଲେ ବା କାଣି ପକ୍ଷୀ ଆଦ କୀଟଗଣ
ମାତୃ ସେବା କରିବାକୁ ବଳାଇଛୁ ମନ ।
ନିଜ ନିଜ ସାର୍ଥ-ମତେ କରିବାକୁ କର୍ମ
ଭାବିଥିବେ ପଶୁ ମନେ ପାଳିବାକୁ ଧର୍ମ ।
ମାତୃ କଷ୍ଟ ସୁମରଣେ କରି କୃତଜ୍ଞତା
ସଙ୍ଗୀତ 'ଧ୍ୱ କରୁଥିଲେ ଦେଖାଇ ଯୋଗ୍ୟତା ।
ସେ ଶବଦ ସଜ୍ଜନେ ଶୁଣିଣ ସ୍ତବକ
ଚଳେ କୁମୁଦନୀ ଥାଇ ନୁଆଇ ତାନୃତ ।
ପଡ଼ି ଦୁଃଖେ ପରିତ୍ୟାଗ କର ସଙ୍ଗସୁଖ
ରହିଥିଲା ବୃଦ୍ଧସଙ୍ଗେ ପୁଗାଇ ତା ମୁଖ ।
ସୁରତ ରସକୁ ପାଠ କରୁଥିଲା ଭୃଙ୍ଗ
ରସପାନେ ପଡ଼ିଗଲା ଥିସ ଦୁକୁଯୋଗ ।

ମୂଦ୍ଧ୍ୱଭରେ ହେଲା ! ନୀଳ ବନ୍ଧୁ ବନ୍ଧନରେ
ପଭଚନ୍ଦ୍ରା କାଳଗୁପେ ଘୋଟିଲା ସହଯେ ।
ଦେବାଳୟେ ସୁମଧୁର ଜ୍ୱଳାଇ ଦୀପମାଳା
ବସ୍ତ୍ରଜିତ୍ କଣ୍ଠେ ଶବା ଚମ୍ପା ପୁଷ୍ପମାଳା ।
ସନ୍ଧ୍ୟାଦେବୀ ହାର କରା କଣ୍ଠଦେଶେ ତାର
ପକାଏ କି ବମ୍ଭାଭ ସ୍ତୁତ ଘରଦ୍ୱାର ।
ଘଣ୍ଟା ଶବ୍ଦେ ନୃତ୍ୟଗୀତେ ଚିତ୍ତ ବିମୋହନ
ଅଲୋକର ପ୍ରତିଦିନେ ଜନଙ୍କୁ ଦର୍ଶନ ।
ଏରୂପର ସନ୍ଧ୍ୟାକାଳୀ ଧର ସୁନ୍ଦରୂପ
ପ୍ରେମ ରସ ଗୁଡ଼ • ରଖି ଥାଏ ହୃଦ କୂପ ।
ଅତି ଅବାଲ୍ୟେ ସେହୁ ହୋଇ ସରଳତା
ଅନୁକ୍ଷଣେ ବରଷାଇ ଗୃଢର ମମତା ।
କୋମଳାଙ୍ଗି ଭନୁଅଟେ ପ୍ରସନ୍ନ ବଦନୀ
ସ୍ୱର୍ଣ୍ଣ କାନ୍ତି ସୁମାମଣ୍ଡି ଜଗତ ମୋହନୀ ।
ଲଲାଟ ଅଟଇ ଅର୍ଦ୍ଧ ଖଣ୍ଡଚନ୍ଦ୍ର ସମ
ଝଟ ଝଟ କେୟାଭ ପ୍ରତିବନ୍ଦି କ ମାଧୁରୀ ।
କାଳୀର କପୋଳ ଗଣି ବଟନ୍ କର୍ମାଣ
ଧାତାର କୌଶଳ ଅଟେ ଶାସ୍ତ୍ର ଉପାଦାନ ।
କି ସୁନ୍ଦର ଶୃଙ୍ଖଠାଣି ଜଗତ ମୋହକ
ଉପମାକୁ • ଉପମେୟ କରିବ କନକ ।

ମନ୍ଥରଗମନୀ ଗ୍ରୀଳଂ କି ଜାତ ମଧୁର
ଅତି କୋମଳତା ଯାର ଦିଶଇ ସୁନ୍ଦର ।
ଏହୁ କରୂପରେ କଣ୍ଠ କମ୍ବୁକ ବିସ୍ତାର
ଅହା ! କି ସୁନ୍ଦର ଦିଶେ ଉଦରୁ ଗଭୀର ।
ଶ୍ରୀଚରଣ ଦୁଇଅଟେ କମଳ ଆକୃତ
ହେମ ମଧ୍ୟେ ବାଳ୍ୟନାଥ ଶୋଭା ଉଭପତ୍ତି ।
ବାହୁ ଯେଣ ଦଣ୍ଡଅଛି ମୃଣାଳ ଆକୃତ
ଜ୍ୟୋତି ପ୍ରଭାପରେ କବା ଛୁଟଇବେ ପ୍ରକୃତ ।
ହୃଦ ଦେଶ ଅଟଇକି ସାଗରର ସମ
ଦମ୍ଭୃନାବ ଭ୍ରମଇ କି ଛାଇଁ ଅନୁକ୍ଷଣ ।
କୁଞ୍ଚିତ ଅଳକା ଘେରି ଜଗତ ବନ୍ଦନ
ଭ୍ରମର ପଙ୍କ୍ତିବଳୀ ପରି ଦିଶେ ଘନ ଘନ ।
ବ୍ରହ୍ମା ଶିବ ଦେବେ ଯଣ୍ଡୀ ଦେଖି ତୋରରୂପ
ବିଧାତା ଗଢିଅଛି କରି ସୁସ୍ୱରୂପ ।
ଆହ୍ଲାଦ ବସ୍ତ୍ର ରୂପେ କଷି ପଞ୍ଚଧାତ
ସର୍ବ ଶିବଙ୍କର ରଙ୍ଗ ମାଁଜ ଅଭିମାନ ।
ଧନ୍ୟରେ ରମଣି ତୁହି ଧନ୍ୟ ତୋର ରୂପ
ଭକ୍ତି ରସେ ହୃଦେ କବା କରୁଅଛୁ କୃପ ।
ରମଣୀ ରଞ୍ଜନ ନାସା ତିଳଫୁଲ ଜିଣି
ମନଶର ଓଟାର କି ନେଇଅଛୁ କିଣି ।

ଅତି ପ୍ରଜ୍ୱଳିତ ତେଜଂ ନୂତନ ଗ୍ରମାର
ସଙ୍ଗ ଗୁଣେ ତାରହୃଦ ହଉଥିଲୁ ସାର ।
ଭାବେ ଗଦଗଦ ହୋଇ ଝୁଲଇ କି ରଙ୍ଗେ
ମନ୍ଦ ମନ୍ଦ ଝାଙ୍କିବନ୍ଦେ ତଥି ସଙ୍ଗେ ସଙ୍ଗେ ।
ଶୋଭାଭଙ୍ଗି ଧରି ଉଭା ହେଲା ସ୍ୱପ୍ରସନ୍ନା
ପରସୁଖେ ବାଞ୍ଛାକରେ ହୋଇ ପ୍ରମୋଦନୀ ।
ଶୋଭା ମାଧୁରୀଙ୍କ ଦେଖି ଘୋଟିଲା ଜଗତେ
ସଙ୍କୀର୍ଣ୍ଣ ଦେଖି ଚିନ୍ତା କରେ ହୃଦଗତେ ।
ହୃଦୟେ କାମନା କରି ସର୍ଗ ବାଞ୍ଛା କରେ
ସର୍ଗ ଦରଶନ ଘୃଣେ ନରଲୋକେ ସତ୍ୱରେ ।
କି ରୂପରେ ଏତେ ଦୁଃଖ ଦେଖିବ ନୟନେ
ଶୁଣିଲେ ସକଳ ଦୁଃଖ ନସହେ ମୋମନେ ।
ନଦଣଇ କଷ୍ଟୁଁ ବୃଦ୍ଧି କରଇ ଯାତନା
ଲୋଭର ଧାରରେ ମାତ୍ର ହୃଦ ଭସାଇନା ।
କିରୂପରେ ତାଙ୍କ ଦୁଃଖ ଫେଡ଼ିବ ବଚନେ
ନଶାକର ତୃଷ୍ଣା ହାଲୁଁ ତାଙ୍କରେ ବ ତକ୍ଷଣେ ।
ହରଷ ବଦନେ ଲଭି ଅତି କୃପଣତା
କରଯୋଡ଼ି ସ୍ତୁତିକଲା ଜଗତ-ବନ୍ଦିତା ।
ହେ ପ୍ରଭୁ ! କରୁଣାକର ଜଗତ-ପାଳନ !
ସୁଧା ଧାର, ବରଷାଇ କରଉଛୁ ପାନ ।

ନିଶାମଣି ଜ୍ଞାନପଣ୍ଡ ବନ୍ଦନ୍ତ ଆପଣ
କୁମୁଦିନୀ-ବନ୍ଧୁ ବୋଲି ଶୁଣିଅଛୁ କର୍ଣ୍ଣ ।
ଭକ୍ତତୁମ୍ଭ ପ୍ରୀତ ଅଟେ ଭକ୍ତେ ତୁମ୍ଭ ଗୁଣ
କେତେ ଦୂରେ ରହି ପ୍ରୀତ କରୁଅଛ ପୂର୍ଣ୍ଣ ।
ଗୁଣର ଆଧାର ଅଟ ଦୟାର ସାଗର
ଯାହାଙ୍କ କରୁଣା ବହୁ ଜଗତ ଉଦ୍ଧର ।
ଚିଦାକାଶରେ ଉଦେ ହୋଇ ମୋ ଦୁଃଖ ନିବାର
ଚରଣେ ଦୈନ୍ୟ ମୁହିଁ କରେ ବାରମ୍ବାର ।
ରମଣୀରଞ୍ଜନ ସ୍ତବ ଶୁଣି ନିଶାପତି
ଭକ୍ତିଭାବ ବୁଝି ଉଭା ହେଲେ ସେ ଝଟତି ।
ପୁଚ୍ଛାକଲେ କାହିଁ ଏତେ ସ୍ତୁତି କଲୁ ମତେ
ହୃଦୟ ଯେଉଣ କାମ କହ ମତେ ସତେ ।
ଯାହା ଆଜ୍ଞା ଦେବ ତାହା କରିବ ପାଳନ
ନିଃଶେଷରେ କରିବ ମୁଁ ସଂଶୟ ମୋଚନ ।
ନିଶାଙ୍କର ବାଣୀ ଶୁଣି ସେ ଗୁଣସମ୍ପନ୍ନା
ବିନୟରେ କହେ ବାଣୀ ଭକ୍ତେ ହୋଇ ମଗ୍ନା ।
ହୃଦୟ ହୋଇବ ମୋର ଯେମନ ଭକ୍ତି ଭାବ
ମୋ ହୃଦେ କୁମୁଦ ବନ୍ଧୁ ! ଲୋଡେ ତୁମ୍ଭ ଭାବ
ପ୍ରୀତି ଭାବ ଯେଉଁ ହୃଦେ ଉଦେ ଭାଗ୍ୟପତି
ତାଙ୍କୁ ସଙ୍ଗତେ ଯେମନ ଚିଦାକାଶେ ଉତ୍ପତ୍ତି ।

ଫୁଟି ଫୁଟି ଜ୍ୟୋତି ଦିଶେ ଆକାଶ ମଧ୍ୟର
ଅନ୍ଧକାର ଧ୍ୱଂସନେ ଦିଶେ ତେଜସ୍କର ।
ଜଗତ ଆଲୋକ ହୋଇ ଦିଶିଲା ପ୍ରତାପ
ସୁଧାଧାର ଯୋଗୁଁ ଅଉ ନିବେଲା ସନ୍ତାପ ।
ପ୍ରେମେ ଟଳ ଢଳ ହୃଦେଲ ଥାଇ ଜଳଧିରେ
ଚନ୍ଦ୍ର ଛଟାଙ୍କରେ ଶୁନ୍ଧେ ଭକ୍ତ ପ୍ରେମ ବଳେ ।
ଦୁଇଙ୍କର ମନ ଯେବେ ଏକ ହୋଇ ଗଲା
ପ୍ରେମର ସାଗର ଗୋଟି ତହିଁ ବୋହି ଗଲା ।
ଭସାଇଣ ଦେଲେ ତହିଁ ଭବ ରୂପ ନାବ
ତହିଁପରେ ବସି ଝଲେ ଭିନ୍ନ ଭିନ୍ନ ଜୀବ ।
ଜୀବେ ଦୟାବନ୍ଧ କରଇଲେ ଉପଧାନ
ଟୋପି ଟୋପି ଜଳ ପଡ଼େ ବୁଦ୍‌ବୁଦ ସମାନ ।
ଝର ଝର ଧାର ଯେବେ ବହିଲା ପବନେ
ଧୀରେ ଧୀରେ ଭେଦିଂ ଯାଇ ପଶିଲା ଜୀବନେ ।
ସର୍ବ ଜୀବ ତୃଷ୍ଣା ଦୂର କଲେ ପାଇ ନୀର
ଝର ଝର ବହିବାରୁ ଶବଦ ଗମ୍ଭୀର ।
ହୃଦୟ କନ୍ଦର ଅଛି କଲେଜ୍ଜା ଶୀତଳ
ବାତ ଯୋଗୁଁ ବୃକ୍ଷ ହଲିଲ ହୋଇ ଟଳ ଢଳ ।
ମାତା କୋଳେ ଥାଇ ବଢ଼ି ଗଲେ ପଲ୍ଲବରେ
ପ୍ରେମ ନୀର ଯୋଗୁଁ ରୂପ ବହିଲେ ତରୁରେ ।

ମାଭାଙ୍କର ମନ ତୋଷ ଦେଲା ସେହୁ ତାଳେ
ଆନନ୍ଦରେ ସକଳଙ୍କ ଗୃହୁଁ ଥାନ୍ତି ଘାଲେ ।
ଯେବେ ରସ ଝୁଣଗଲା ହୃଦୟ ବନରେ
ବାସ ଚହଟିଲା ତେବେ ଜଗତ ମଧ୍ୟରେ ।
ସୁବାସ ସୁମନ ବୃକ୍ଷ ଅଛ ମନୋହର
ଝିର ଝିର ରସ ଧାର ବହେ ନିରନ୍ତର ।
ରସ ଧାର ସ୍ନିଗ୍ଧ ଯାଇ ପଶେ କ୍ୟୋଟି ଘରେ
ମାନ୍ କର୍ଷୁ ନ ରହଲ ହୃଦୟ ବନରେ ।
ଫୁଟିଛୁ ମାଧବ ଦେଖ ତେଜର କୁସୁମ
ଶୂନ୍ୟ ମଧ୍ୟେ ଫୁଟି ଅଛୁ ଥିଲବା ଅକ୍ଷମ ।
ଏପରି ଭୁବନ ଶୋଭା ବଳ କ ରଙ୍ଗରେ
ବ୍ରହ୍ମ ତେଜ ଜଳୁଥାଏ ସକଳ ମଧ୍ୟରେ ।
ଗୁଣୁ ଗୁଣୁ ଶବ୍ଦ କର ଭକ୍ତ ମଧୁକର
କ୍ୟୋଟ ଘରେ ଅଣା ଭଙ୍ଗି ନ୍ତେ ଫର ଫର
ଉଲ୍ଲାସରେ କରିବାକୁ ପ୍ରେମରସ ପାନ
ମନ ଶର ଲାଗି କରେ ହୋଇ ତାନ ମାନ ।
ଝଙ୍କାର ଶବ୍ଦକୁ କର ଉଡଇ ଶୂନ୍ୟରେ
ରସ ଘରେ ଚଉ୍ ନେଇ ନବେଶେ ସତ୍ୱରେ ।
ତାହା ଯେବେ ପାନ କର ହୋଇବ ଅନନ୍ଦ
ପରଂବ୍ରହ୍ମ ଦରଶନେ ସକଳେ ପ୍ରମୋଦ ।

ଏହି ପରି ଶୋଭାବନ ଦର୍ଶି ଗଲ୍ପ ପୁଣି
ସୁରଭି ସୁମନ୍ତ ପୂର୍ଣ୍ଣ ଦଶଥ ମାଧବ ।
ରସ ପାନେ ଜୀବମାନେ ହେଲେ ପଲ୍ଲବିତ
ନାନାବିଧ ପୁଷ୍ପ ଶୋଭା ଚିତ୍ତ ଉଚ୍ଛଳିତ ।
ପୁଷ୍ପ ବାସେ ମଧୁକର ହେଉ ଗୁଞ୍ଜନ ରବ
ମନ ମୁଗ୍ଧ କରିବାକୁ ଦେଖାଏ ସେ ଭାବ ।
ଅତି ମନୋହର ଦିଶିଗଲାତ ଜୀବନ
ସେ ଶୋଭାରେ ପଡ଼ିଗଲା ଜୀବର ନୟନ ।
କ୍ଷଣକରେ ଗୃଧ୍ନୁ ହେଉ ହେଲା ସେ ଅସ୍ଥିର
ସକଳ ବିଚାର ଏଣି ମନ କଲା ସ୍ଥିର ।
ସବୁ ଦେଖି ଜୀବ ତୃଷ୍ଣା ମଣିଲା ଅପାର
ଅକୂଳ ଯୋଗରୁ ବୁଦ୍ଧି ବିଭିନ୍ନ ଆଧାର ।
ଅରଣ୍ୟ ମାର୍ଗରେ ଭ୍ରମେ ଘାରିଲା ଜୀବନ
ଅଧ୍ୱ କୂଳ ନ ପାଇବ ଦଗ୍ଧ ଅନ୍ତଃକରଣ !
ବିଭିନ୍ନ ଭାଳେଣି କରି ହୁଅଇ କାତର
ଫଳାଫଳ ଗଣିନାହିଁ, କ୍ଷଣ୍ଣିତ ମାତର ।
ହେ ପ୍ରଭୋ କରୁଣାନିଧି ଜଗତମୋହନ
ହୃଦେ ପଶି କରିଥିବ, ଆସନ ଗ୍ରହଣ ।
ଲୀଳା ପରି ଦେଖୁଅଛ ପ୍ରତ୍ୟକ୍ଷ ଦୃଷ୍ଟିରେ
ମାନବଙ୍କୁ ବାନ୍ଧିଦେଇ ମାୟା ପଟଳରେ ।

କାହିଁ ଯାର ଶକ୍ତି ଅଛି ଜାଣିବାକୁ ମାୟା
ଯୁଗ ମୋହ ଅନ୍ଧକାରେ ରହି ଏହି କାୟା ।
ଶକ୍ତି ଦିଅ ଚିହ୍ନିବାକୁ ସଂସାର ବ୍ୟାପାର
ନ ଭୁଲନ୍ତୁ ଜାଣିଲେ ମୁଁ ପ୍ରୀତି ଖାରସାର ।
ସଂସାରର ସାର ତତ୍ୱ ଚିହ୍ନାଅ ହେ ହରି
ଭବ-ବନ୍ଧ କାଟିଦେଲେ ଜୀବ ଯିବ ତରି ।
କେଉଁରୂପେ ତିଆରିଛ ସଂସାରର ଚକ୍ର
ସେଥି ଯେବେ ପଡ଼ି ଦେବ ହେବ କି ପବିତ୍ର ।
ଜ୍ୟୋତିଘରେ କ୍ଷପ ଘଡ଼ି ରୂପ ଚମତ୍କାର
ଚିହ୍ନିବାକୁ ଶକ୍ତି ଦିଅ ଅହେ ନିର୍ବିକାର ।
କିଛି ନ ଜାଣଇଁ ମୁହିଁ ଅଜ୍ଞାନ ପାମରି
ଭବ ଭ୍ରମଣା ଭାବେ ହେଲି ଏତେସର ।
ଦୁଷ୍ଟ ଲାଳସା ଶକ୍ତି କରେ ହଟଚଟ
ବୃଥା ଆଶା ଯୋଗୁଁ ଜୀବ ହୁଏ ଛଟପଟ ।
କେଉଁ ଠାରେ ଅଛ ପ୍ରଭୋ କେଉଁ ରୂପ ଧରି
ଭକ୍ତି ରସ ପାନ ମତେ ଦେଉ ନାହିଁ ହରି !
ଭ୍ରମି ହେଲିଅଛି ସଦା ଶୂନ୍ୟ ମଣ୍ଡଳରେ
ବିଶ୍ୱତରେ ଜ୍ଞାନ ଚକ୍ଷୁ ନାହିଁ ମୋ ହୃଦରେ ।
କାହିଁ ତୁମ୍ଭ ଦିବ୍ୟରୂପ କାହିଁ ତୁମ୍ଭ ଭକ୍ତି
ନିରନ୍ତରେ ଏହା ଲୋଡ଼ୁ ଅଛି ମୋର ମତି ।

ତୁମ୍ଭେ ତ ଜଗତପତି, ଜଗତ ଈଶ୍ୱର
ମୋର ପ୍ରତି କୃପା ଦୃଷ୍ଟି କର ହେ ସତ୍ୱର ।
ଭକ୍ତି ରସ ପାନ କରି ମୋର ପାପ ମନ
ପ୍ରଫୁଲ୍ଲ ହୋଉଣ ପ୍ରଭୁ ଯାଉ ଏ ଜୀବନ ।
ପରଂବ୍ରହ୍ମ ରୂପ ଧ୍ୟାୟୀ ସାରୁଥିବ ଦିନ
କେବେ ତାର ପ୍ରଭାବେ ପ୍ରାଣ ହୋଇଯାଉ ଲୀନ ।
ଏହି ବାଞ୍ଛା ହୃଦେ ଧରି ସ୍ମରୁଅଛି ନାମ
କେଉଁ ଦିନ ଏ ଜୀବର ହେବ ପରିତ୍ରାଣ ।
ଦୀନା ହୀନା ଅବଳା ମୁ ନାହିଁ ମୋର ଜ୍ଞାନ
ଏତିକି ପ୍ରଦାନ କର ହୋଇ ଦୟାବାନ ।
ମୋର ଦୋଷ ନ ଦେଖିବ ଅହେ ପରଂବ୍ରହ୍ମ
ଅଦ୍ୟ ଗୋଟି ପୂର୍ଣ୍ଣକଳି ସୁନ୍ଦର ଚରଣେ ।

---

ଭକ୍ତି ପ୍ରାର୍ଥନା ।

ରାଗ—ଶୋକକାମୋଦୀ ।

ଜୀବ ଜୀବନ ହେ ଦିଅବାରେ ଦରଶନ
ଭରସା ମୋହର ନାହିଁ ହେ ଈଶ୍ୱର
ତୁମ୍ଭ ପଦ ବିନା ଆନ । ପଦ ।
ଘେନ ସବୁ ଆଶା କରିଛି ଭରସା
ହେ ପ୍ରଭୁ ତୁମ୍ଭ ଚରଣ ,

ମଣିଅଛୁ ମନେ      ତୁମ୍ଭେ ପାପି ଜନେ
ନ କରତ ଅଯତନ ।
ସେହୁ ଘୃଣା ଦୂର      ମାଗୁଁଛୁ ଈଶ୍ୱର
କର ପାପ ବିମୋଚନ ।
ଏହୁ ବାଞ୍ଛା ଜାଣ      ଯିବା ଯାଏ ପ୍ରାଣ
କରୁଥିବୁ ନାମ ଗାନ ।
ମାଧୁରୀ ବେଶରେ      ହୃଦୟ କନ୍ଦରେ
ବସେ ନର ଦୟା ବାନ ।
ସାଧୁଜନ ସଙ୍ଗେ      ମାତ୍ର ଅନୁରାଗେ
ହରଷେ ବନ୍ଧୁ ଥିବୁ ଦଢ ।
ଉପାସନା କର୍ମେ      କେବେ ହେଲେ ମନେ
କଷ୍ଟିଲେ ନୋହୁ ବିମନ ।
ଏଯେ ଭବ ଜଳ      ନାହିଁ ଅନୁକୂଳ
ପଡ଼ୁଛୁ ହୋଇ ଅଜ୍ଞାନ ।
ହୃଦୟ ଦ୍ୱାର      ହେଉଛି ମୋଚନ
ଉଦ୍ଧାର ହୋଇ ପ୍ରସନ୍ନ ।
ବାଗଚନ୍ଦ୍ରୀୟର      ମନଯେ ମୋହନ
ତୁମେ ହୁଏ ଛିନ୍ନ ଛିନ୍ନ ।
ନ ପାଇଣ କୂଳ      ହୁଅଇ ବ୍ୟାକୁଳ
ସକଳ ଦିଶଇ ଶୂନ୍ୟ ।

ଝୁଣ୍ଟି ଝୁଣ୍ଟି ହୋଇ ମାଡଯେ ଆସଇ
ପ୍ରେମ ଛଳେ ଉପାଇଣ ।
ଚକ୍ଷୁ ଭୁଲଥାଇ ପ୍ରୀତିଭାବ ଯାଇ
ଆସ୍ପୃତ ହୁଏ ଜୀବନ ।
ମାୟା ଅଗ୍ନି-ତାପ ଲାଗିଣ ଅମାପ
ଗୁରୁ ହେଉଛୁ ପ୍ରାଣ ।
ବିପଦ ଭଞ୍ଜନ ପ୍ରଭୁ ନିରଞ୍ଜନ
ସାହା ହୁଅ ବିପଦରେ ।
ସମ୍ପି ମନ ପ୍ରାଣ କରୁଛୁ ଜଣାଣ
ରକ୍ଷାକର ଏ ଜୀବନ ।
ମୋର ମନ ପ୍ରାଣ ତୁମ୍ଭର ଉଆଣ
ଅଛୁ ତୁମ୍ଭ ଅଧିକାରେ ।
ଦିଅ ଏହୁ ଜ୍ଞାନ ପ୍ରଭୁ ତୁମ୍ଭ ନାମ
ଭଜୁ ଥିବ ଅନୁକ୍ଷଣେ ।
ଭକ୍ତ ହୃତକାରୀ ପାପୁଁ ଉଦ୍ଧାର-ପାର
ଜଗତ-ଜନ-ଜୀବନ ।
ହେ ଦୁଃଖ ଭଞ୍ଜନ ନିତ୍ୟ ନିରଞ୍ଜନ
କର ବିଘ୍ନ ବିନାଶନ ।
ଜୟ ଜଗଦୀଶ ଫକୀର ନିସ୍ୱଣ
ଶ୍ରୀପଦେ ଏ ନିବେଦନ ।

ଜୟ ଦୀନବନ୍ଧୁ   କୃପାମୟ ସିନ୍ଧୁ
ଛିଣ୍ଡାଅ ଭବ ବନ୍ଧନ ।
ଜୟ ନିର୍ବିକଳ୍ପ   ପରଂ ବ୍ରହ୍ମ ରୂପ
ହୃଦୟ କ୍ଷେତ୍ରେ ଆସୀନ ।
ସତ୍ୟ ସନାତନ   ଅହେ ଦୟାବାନ
ଦୁଃଖକୁ କର ଧ୍ୱଂଶନ ।
ଶୁଣ ହେ ଶ୍ରୀହରି   ମୋହର ଗୁହାରି
ପାପିଜନଙ୍କ ତାରଣ
ସନ୍ତାନ ସନ୍ତାପ   ଦୂର କର ପାପ
କହିତେ ହୋଇ ପ୍ରସନ୍ନ
ଦିବ୍ୟରୂପ ଥରେ   ଦେଖାଅ ଦୟାରେ
ମୁହିଁ କୃତାର୍ଥି ଜୀବନ
ହେବତ ମୋହର   ଯାହେ ନିର୍ବିକାର
ଏତିକ କର ପ୍ରଦାନ
କପା ଲୁଚ ଅଛ   ଅକୁଳ କରୁଛ
ଏସଂସାରେ କରି ଜନ୍ମ
ପ୍ରଭୁ ଯେବେ ହୋଇ   ନିକର୍ଣ୍ଣବ ଥାଅ
ଆଉକେ ରଖେ ଶରଣ
ନୟନରୁ ନୀର   ବହେ ବାରମ୍ବାର
ନିଦଶଇ ବୁଦ୍ଧିକ୍ଷୀଣ ।

ଅଗ୍ନି ପଲ୍ଲ ମତେ    ବେଢିଛୁ ନରକେ
ଏଣୁଯେ ମାୟା ଭୁବନ ।
ଖୋଜଲେ ମୁରଛ    ସ୍ଥିର ନୁହେ ମଛ
ନଷ୍ଟଉଛୁ ଦବ୍ୟ ଜ୍ଞାନ ।
କାହିଁ ତୁମ୍ଭ ଅନ୍ତ    ପାଇବ ଅଚ୍ୟୁତ
ନାହିଁ ନାହିଁ ପରିତ୍ରାଣ ।
ଜୀବେଁ ଉପୁଜାଇ    ଆହେ ଭାବଗ୍ରାହୀ
ସଦା ଚିତ୍ତ ଛୁନ ଛନ ।
ଜୀବକ ଛଣ୍ଡାଅ    ସ୍ଥିରକର ଲୟ
ସଂଶୟ ନୋହୁ ମୋମନ ।
ଦୟାନିଧି ମୋର    ଦୃଢ ଚିତ୍ତ କର
ନଇଲେ ତୁମ୍ଭ ବଦନ ।
ଗୃହେଁ ଥାଉ ବସି    ଗାଉଦେ ବ୍ରହ୍ମଗାଣି
ଏମୋର ପାପ ଜନୃନ ।
ଏତକ ଗୁହାରି    ପୂର୍ତ୍ତି କର ଦାଶ
ଗାହେପ୍ରଭୁ ନିରଞ୍ଜନ ।
କାଙ୍ଗାଳ ମୁଁ ଅଉ    ନକାଶିବୁ ପ୍ରଭୁ
ହୃଦେ କର ମୂଳ ନାମ ।
ଆସକ୍ତ ମୋହର    ଛଣ୍ଡାଅ ସତ୍ଵର
ଯେନ ଯେନ ମୋଦଇନ୍ୟ ।

ବାନ୍ଧ ପ୍ରେମ ଡ଼ୋର   ଦାସୀ ପଦେ କର
ଉଦ୍ଧାର ଭକ୍ତ ତ୍ରାଣେ ।
କର ଦୟା ବନ୍ଧୁ   , ଶୁଣିଣ କନୋଇ
ମାଗିବି ସଦା ମୁଁ ନାମ ।
ଅନ୍ୟରେ ପୀରତ   ନକରୁ ମୋମନ
ନାମ ଭଜୁ ଅନୁକ୍ଷଣ ।
ଭିକ୍ଷାମାଗି କର   ସାଧୁ ସଙ୍ଗ ଯାପ
ତୁମ୍ଭ ରୂପ କର ଧ୍ୟାନ ।
ପତିତ ପାବନ   ଯାଉ ମୋର ପ୍ରାଣ
ଅନ୍ୟେ ନାହିଁ ପ୍ରୟୋଜନ ।
ଏହି ଔଷଧଟି   ବୋଲ ହରି ହରି
ତୃଷାକୁ କଲ ସମ୍ପୂର୍ଣ୍ଣ ।
ଅଜ୍ଞାନୀ ଅବଳା   ନାହିଁ ମୋର ଭେଳା
ଭରସା ତୁମ୍ଭ ଚରଣ ।
ଯାହା ଇଚ୍ଛା କର   ଜଗତ ଈଶ୍ୱର
ବସିଛୁ ପଦ ସ୍ମରଣେ ।
ପାର୍ଥ ନାଦଦେଇ   ବୋଲ ତ୍ରାହି ତ୍ରାହି
କରଣେ ଗଲ ଶରଣ ।



## ସଂସାରର ଛନ୍ଦ ।

ଧନ୍ୟ ଧନ୍ୟ ଏଜଗତ ଦିଶଇଛି ଶୋଭା
ଛନ୍ଦ ବୈଚିତ୍ର୍ୟରେ ମଣ୍ଡି ହୋଇ ଅଛି ଲୋଭା ।
ବୃକ୍ଷ ଲତାଗଣ ଥାଇ ଦିଶଇ ଯତନ
ପୁଷ୍ପ ଫୁଟି ରହିବାରୁ ହୋଇଛି ମଣ୍ଡନ ।
ପକ୍ଷିକୁଳ କ୍ରୀଡା କରୁ ଅଛନ୍ତି ଆନନ୍ଦେ
ଜଳରେ କମଳ ଫୁଟି ରହିଛି ପ୍ରମୋଦେ ।
ସବୁ ବୃକ୍ଷ ଲୋଟୁଛନ୍ତି ଧରି ଫଳ ପୁଷ୍ପ
ଝର ଝର ବହୁଅଛି ପ୍ରେମମୟ ରସ ।
ଆକାଶକୁ ଗନ୍ଧର୍ବ ତାହା କରୁଛନ୍ତି ପାନ
ହୃଦୟେ ଦଗ୍ଧର ତ୍ୟକ୍ତ ସର୍ବ ଅଭିମାନ ।
ରଖିଛନ୍ତି ଅତିଶୟ ଉଲ୍ଲାସକୁ ବହି
ଧୀରେ ଧୀରେ ରସପାନ କରୁଛନ୍ତି ରହି ।
ଘନ ଘନ ବହୁ ଅଛି ମଳୟ ପବନ
ଅନ୍ଧକାର ଘୋଟି ଅଛୁ ସକଳ ଭୁବନ ।
ଝିର ଝିର ବହୁ ଅଛୁ ଆକାଶରୁ ନୀର
ସକଳଙ୍କ ମନ ପ୍ରାଣ କରଇ ଅସ୍ଥିର ।
ହରଇ ମନକୁ ଦେଖି ଶୋଭାଙ୍କ ସୁନ୍ଦର
ଝିଂଝି ବଜାଇ ମନ କରଇ କାତର ।

ଜଗତ ଆଧାର ପ୍ରଭୁ ଜଗତ ଜୀବନ
କି ଯତନେ ନିର୍ମି କରି ଅଛ ଏ ଭୁବନ ।
ସକଳ ନିର୍ମାଣ କରି ଲୁଚିଛ କିପାଇଁ
ଏବିଶ୍ୱର ଭୂମୂରତି କିନ୍ତୁ ଦେଖିଲି ନାହିଁ ।
ନିର୍ବିକାର ! ନିରଞ୍ଜନ ! ହୃଦୟ ନିବାସୀ
ନଦେଖଇ ଏନୟନ ତବ ରୂପ ରାଶି ।
ଲୀଳା ମାଧୁରୀକି ଦେଖି ହୁଅଇ ଚହଲ
ଅଜ୍ଞାନ ଭାବରୁ କିଛି ନଦିଶଇ କଳ ।
ଭାଗ୍ୟଫଳ ଯୋଗୁଁ ସର୍ବ ହୁଅଇ ଶୀତଳ
ସର୍ବ ଜୀବ ସମଭାବେ ହୁଅନ୍ତି ପ୍ରବଳ ।
ସୁଧାଧାର ଦାନ କରୁଛନ୍ତି ହରଷରେ
ସକଳ ଜୀବନ ରକ୍ଷା ପାଇଁଣ ମନରେ ।
ଅନୁକ୍ଷଣେ ସୁଧାମୟ ବନ୍ଦେ ଝର ଝର
ଶୀତଳ କରନ୍ତି ଜୀବ ଆନନ୍ଦେ ସତ୍ୱର ।
କଲାମେଘେ ଲୁଚିଯାନ୍ତି ଦେଖାଇଣ ଭୟ
ଜୀବନ ନ ଚାହେଁ କେବେ ତାଙ୍କର ହୃଦୟ ।
କାତରଙ୍କୁ ବହୁ ଅନ୍ତ ହୁଏ ଛନ ଛନ
ବାତ ଚକ୍ର ପ୍ରାଏ ଭ୍ରମି କରୁଥାଏ ମନ ।
ଅରଣ୍ୟରେ ଜୀବ ବସି କଲି ନିରୀକ୍ଷଣ
ସଂସାରର ହାବ ଭାବ କଲି ଦରଶନ ।

ସନ୍ତାପିତ ହେଉଅଛି ହୃଦୟ ଯାହାର
ନୟନରୁ ବହୁଅଛି ନୀର ଧାର ଧାର ।
ଦୁଃଖାନଳ ଜଳୁଅଛି ହୃଦୟ କନ୍ଦରେ
ସନ୍ତାପିତ ଘୃତାହୁତି ପଡ଼ଇ ସତ୍ୱରେ ।
ଘୃତହୁତ ପରାକ୍ରମ ଅଗ୍ନି ଉଠେ ଶିଖାଭର
ପ୍ରତାପରେ ଜଳୁଅଛି ହୃଦୟ ଦ୍ୱାର ।
କ୍ରୋଧ କାଷ୍ଠ ଭରି ଦେଲେ କରି ଅତି ଯତ୍ନ
ସନ୍ତାପିତ ଘୃତ ପଡ଼ୁଅଛି ଘନ ଘନ ।
ବେଳୁ ବେଳୁ ଜ୍ୟୋତିର୍ମୟେ ଉଠୁଅଛି ଅଗ୍ନି
କ୍ଷୁଧା, ତୃଷା, ବସ୍ତ୍ର ରୂପେ ହୋଇଛନ୍ତି ବରଣି ।
"ମହା ତାଙ୍କ" ଉଚାରନ୍ତି ହୋଇ ଛିନ୍ନ ଛିନ୍ନ
ତବ ମନ୍ତ୍ର ଜପୁଛନ୍ତି ଫୁଲ୍ଲାଇ ବଦନ ।
ପରଂ ବ୍ରହ୍ମ ତେଜକୁ ସେ ଧ୍ୟାଅନ୍ତି ହରଷର
ଜ୍ଞାନ ବଳ ସବୁ ସେହି ତ୍ୟୁତକୁ କରଇ ।
ପ୍ରତାପ ଅଗ୍ନିକି ତୁହିଁ କରନ୍ତି ଆଧାର
ଘୃନନ୍ଦ ମନରେ ବସି ଥାନ୍ତି ଭବଦ୍ୱାର ।
ଅଗ୍ନିକୁ ଆହାର ଯେହୁ କରବ ସନ୍ତତେ
ହରଷ ହୋଇବ ଅଗ୍ନି ଦେଖିଲେ ନରତେ ।
ଅଗ୍ନିକିତ ହୃଦ ମଧ୍ୟେ ରଖିବ ଯତନେ
ତାଙ୍କ ମନ କ ଘୃହାରେ ତୋଷିବ କେସନେ ।

ଜଳଠାରୁ ଶୀତଳରେ କରନ୍ତି ଆଧାର
ଓଷ୍ଠାରୁ ଅଛନ୍ତି ବାକ୍ୟ ହୁଦେଁ ବାରମ୍ବାର ।
"ଅଶୀଳଭ" ସଖୀ ରୂପେ ପାଶେଛନ୍ତି ରକ୍ଷି
ହୋମକୁଣ୍ଡ ପାଶେ ବସି ଗ୍ରହାନ୍ତି କରେଛି ।
ଅଶ୍ରୁଧାର ନୟନରୁ ବହେ ଧାର ଧାର
ବୁଦ୍ଧି-ବଣା ହୋଇଯାଇ ପାଶେ ଅଗ୍ନିଦ୍ୱାର ।
ଅଶ୍ରୁଧାର ମଣ୍ଡୁଛନ୍ତି ମଳୟ ପବନ
ହଂସାଙ୍କୁ ବରଣ କରି ଆଣନ୍ତି ବହନ ।
ଏପରି ସମୟେ ମନ ଉଦ୍ବେଗରେ ଯାଇ
କଣ୍ଠଭ ପ୍ରମାଣେ ମନ ଦୁଃଖ ଧରୁନାହିଁ ।
ଯୋଗକରି ଆସଇ ସେ ଅମର ଭୁବନ
ବେଳେ ବେଳେ ତୀର୍ଥଯାକ କରି କରି ସ୍ନାନ ।
ଦେବାଳୟେ ଭ୍ରମିଯାଇ କରଇ ଦର୍ଶନ
କେତେବେଳେ ପୁଷ୍ପ ଶେଯେ କରଇ ଶୟନ ।
ବ୍ରହ୍ମଚାରୀ ବେଶ କେତେବେଳେ ସେ ଧରଇ
ଧନଦାସ ସ୍ମୃତେ ବେବେ ସ୍ତ୍ରୀଢକ କରଇ ।
ଭ୍ରମଣ କରଇ ସେହି ଜଗତେ ନାରତେ
ବନରେ ପୁଣିଣ ବୁଲୁଥାଇ ଅବରତେ ।
ନାନା ଜାତି ପୁଷ୍ପମାନ ଦେଖଇ ଉଲ୍ଲାସେ
ଅତି ସୁମଧୁରେ ପୁଷ୍ପ ଅରଣ୍ୟରେ ବାସେ

ସ୍ୱର୍ଣ୍ଣ ପୁଷ୍ପମାନ ଯେବେ ହୁଅଇ ମଣ୍ଡନ
ହରଷରେ ବେଶ ହେଉଥାଏ କ ଯତନ ।
ହରସରେ ଦର୍ପି କେବେ କରଇ ରୋଦନ
ଧନ୍ୟ ତାର କ୍ରୀଡ଼ାଭାବ ଧନ୍ୟ ସେହି ମନ ।
କେବଳ ଖଣ୍ଡିତ ମାତ୍ର ସ୍ଥିର ସେ ନୁହଇ
ବନେ ବସି ତ୍ରିଭୁବନ ଯାକ ସେ ଗମଇ ।
ତାର ପଦେ କୋଟି କୋଟି କରେ ନମସ୍କାର
ତା ଭାବ ବର୍ଣ୍ଣର ହୃଦ ହୁଅଇ ଉଦାର ।
ନୃତ୍ୟ କରୁଛନ୍ତି ଈର୍ଷା ତଥି ହିଂସା ମୋହ
ଭଲ ତାଙ୍କ ଭାବ ଅଟେ ଭଲ ତାଙ୍କ ସ୍ନେହ ।
"ଅହଂକାର" ରହି ମାରୁଥାଏ କରତାଳି
ନିରନ୍ତରେ ଗୃହ୍ନୁଁ ଥାଏ ନୟନକୁ ଢାଳି ।
କାତର ଭାବରେ ଲୁଟେ ଯାଇ ଦିବ୍ୟ "ଜ୍ଞାନ"
ଭକ୍ତିଭାବେ ତାଙ୍କ କେହି ନକରେ ପାଳନ ।
ଏପରି ଭାବରେ ଅଗ୍ନି ପ୍ରଭାବେ ଜଳଇ
ଖଣ୍ଡିତ ପ୍ରମାଣେ ଆଉ ଶାନ୍ତିର ନୁହଇ ।
ଚଉଦଗ ଗୃହେଁ ଜୀବ ନିଦ୍ରାଇଣ କାତର
ଆଉ ସାହା ନାହିଁ ତାକୁ ଏହି ଜଗତର ।
ଭାଳୁଥାଏ ବସି ଜୀବ କିସ ଏ ସଂସାର
କିଛି ଜଣାଗଲା ନାହିଁ ଏଥି ସାରସାର ।

ନିରନ୍ତରେ ଆକୁଳିତ ହୁଏ ମୋର ପ୍ରାଣ
କଣ୍ଠରେ କରୁଣା ଜଳ ପ୍ରଭୁ କର ଦାନ ।
ଶୀତଳତା ଲଭିବ ସେ ସୁଧା କରି ପାନ
ହୃଦ ଅଗ୍ନି ଲିଭି ଯିବ ପାଇଗଲେ ଜ୍ଞାନ ।
ଅଗ୍ନି କୁଣ୍ଡେ ଜ୍ଞାନ ବୀଜ ବୁଣି ଦେବ ଦକ୍ଷ
ଘୃତଧାର ଦିଅ ଢାଳି ପ୍ରେମରସ ଭକ୍ଷ ।
ଅସ୍ପୃଶ୍ୟ, ଅବ୍ୟକ୍ତ, ବସ ଥଇ ବିପ୍ର ରୂପ
ଭକ୍ତ ବାକ୍ୟ ଉଚ୍ଚାରଣ ଭାଙ୍ଗ ଭବ କୂପ ।
ପରମ ରସକୁ ସ୍ୱାସ ଦିଅ ପରଂବ୍ରହ୍ମ
ଯେହ୍ନେ ପାପ ମୁକ୍ତ ହେବ ଧନ ଏ ଜୀବନ
ତେଜକ ପ୍ରତାପକୁ ଥଇ ବଢେକର ହାଇ
ହୋମ କୁଣ୍ଡ ଭସ୍ମ କର ଦେଇ ଶାନ୍ତିବାରି ।
ଏତିକି ପ୍ରାର୍ଥନା କରି ମାଗୁଅଛୁ ପ୍ରଭୁ
ଗୁରୁ ଚରଣରେ ମାତ୍ର ସଦା ଚିତ୍ତ ରହୁ ।
ଜଳନ୍ତା ଅନଳୁ ମଧ୍ୟେ କରି ଦିଅ ପାର
ନାମମାଳା ଲମାଇବ ହୃଦେ କରି ହାର ।
ପରଂବ୍ରହ୍ମ ଅନୁଷ୍ଠାନ କରୁ ଏ ଜୀବନ
ମାତ୍ର ଦିବ୍ୟ ରୂପ ଚିହ୍ନି କରିବ ଦର୍ଶନ ।
ଅନ୍ୟ ବାଞ୍ଛା କିଛି ଗୁରୁ ନପଶୁ ମନରେ
ପରଂବ୍ରହ୍ମ ଧ୍ୟାନ କରୁଥିବ ଆନନ୍ଦରେ ।

ନାମ ସୁଧାପାନେ ଥିବ ସଦା ଦିବା ବସି
ପଦ କମଳରେ ରହୁ ମୋର ମନ ରସି ।
କେତେବେଳେ ଜଗତରେ ଭ୍ରମଣି ନକରୁ
ପଦ ମୂଳାଧାର କରି ସର୍ବ ଦୁଃଖ ହରୁ ।
ଅହଙ୍କାର ଘୁଞ୍ଚିଯାଉ ମନର ମୋହର
ଏକ ପରଂବ୍ରହ୍ମ ମଣୁ ସର୍ବ ଜଗତର ।
ଜୀବ ଏକ ଅଟେ ପ୍ରଭୁ ନାହିଁ କିଛି ଭିନ୍ନ
କି ଦୋଷରୁ ଏଜୀବନ ହେଲା ଏତେ ଖିନ୍ନ ।
ତୁମ୍ଭନାମ ପାଶୋରିଲି ହେଲି ଅକାରଣ
ଧିକ ଧିକ ଏସଂସାର ଧିକ ଏ ଜୀବନ ।
ବ୍ୟର୍ଥ ହେଲା ଏଜୀବନ ଲଭିଣ ଜନମ
ନଚିହ୍ନିଲି ପରଂବ୍ରହ୍ମ ହେଲି ମୁ ଅଜ୍ଞାନ ।
ତୁମ୍ଭେ ପ୍ରଭୁ ଦୟାକରି ଜୀବକୁ ଉଦ୍ଧାର
ସବୁ କରିଦେଲ ପ୍ରଭୁ ହୃଦୟ-ନଗର ।
ଭବରୂପ ସିନ୍ଧୁଁ ତରି ଯାଉ ଏ ଜୀବନ
ଏହି ଆଶ ଧରି ପ୍ରଭୁ କରେ ନିବେଦନ ।
ହୃଦେ ପୂରି ରହୁ ଦୟା ଭାବ ଭକ୍ତି ରସ
ଅସଙ୍ଗରେ ସଙ୍ଗିହୋଇ ନହେଉ ହରଷ ।
ଏତିକି ସଙ୍କଳ୍ପ କରି ଧ୍ୟାଇ 'ପରଂବ୍ରହ୍ମ
ପଦ୍ୟ ଗୋଟି ପୂର୍ଣ୍ଣ କଲି ଭାବ ଦରଶନ ।

ସ୍ତବ ।

(ଝିଂଝିଟି—ଏକତାଳ ।)

ସଦା ଶୁଷ୍କ ଥିବ କହେ ଏହି ଅବଳା ହୃଦୟ ?
ଭୂମି ହୋଇ ମରୁ ମଧ୍ୟେ ମଙ୍ଗଳକ, କୃପାମୟ । ପଦ ।
ଏହି ଭବଜଳେ ଢ଼ରି ଯାଏ ପ୍ରେମରେ ସନ୍ତରି
ନଜାଣଇ କହି ସୁଖ ହୋଇ ମୁଁ ଅଜ୍ଞାନମୟ । ୧ ।
ଆହେ ରସିକ ଶେଖର ରସ ପୂର୍ଣ୍ଣ ଶ୍ରୀ ପୟୁର
ମୋର ହୃଦେ ରସ ପୂର୍ଣ୍ଣ କର ଯୋଜନା ଜନମୟ । ୨ ।
ହୃଦ ପାଷାଣ ମୋହର ହେଉଛି ସଦା କାତର
ନ ଲଭିବାରୁ ଶ୍ରୀହରି ! ତବ ଅଭୟ ବର । ୩ ।
ଆହେ ପ୍ରାଣବନ୍ଧୁ ଅସ ପାପୀ ହୃଦେ କର ବାସ
ବ୍ୟାକୁଳରେ ଡାକୁଅଛି ମନକୁ କରଅ ଥୟ । ୪ ।
ଦେଖି ଭବର ଯନ୍ତ୍ରଣା ପଥ ହେଉଅଛି ବଣା
ତୁମ୍ଭର ନାମକୁ ଛିଡ଼ ହୋଇଅଛି ନିରାଶ୍ରୟ । ୫ ।
ନପାଇ ମୁଁ ନାମ—ଜଳ ସନ୍ତପ୍ତି ଅତି ବ୍ୟାକୁଳ
ଏ କଣ୍ଠାଗତ ଜୀବନେ ଦିଅଁ ପୁଣ୍ୟ—ମଳୟ । ୬ ।
ମୋର ଏ ହୃଦ କାନନେ ଜଳଦ ଚିହ୍ନ ସମାନେ
ସ୍ୱର୍ଗୀୟ ସମ୍ପତ୍ତି ଦିଅ ବୃଷ୍ଟି କରି ପ୍ରେମ-ପୟ । ୭ ।
ଫୁଟିବ ଭକ୍ତି ସୁମନ ଛିଡ଼ିବ ହେବ ପାପ ମନ
ଗନ୍ଧକୁ କରି ଆଘ୍ରାଣ ଦୂର ହେବ ସର୍ବ ଭୟ । ୮ ।

ଅହେ ପ୍ରଭୁ ପୁଷ୍ପ ମଧ୍ୟେ     କରୁଣାକୁ ବହ୍ନ ହୃଦେ
ଶୁଣିଣ ମୋର ଭାରତୀ     କର ପ୍ରେମ ମଧୁମୟ । ୯ ।
କୃତାର୍ଥ ହେବ ଏ ଜୀବ     ତୁମ୍ଭର ସୀରତ ଥିବ
ଶରଣ ଗଲି ଶ୍ରୀପଦେ     ରଖ ହୋଇଣ ସଦୟ । ୧୦ ।

---

ସମାପ୍ତ ।



## ବିଜ୍ଞାପନ ।

| | |
|---|---|
| ସନ୍ତୁକ୍ରସଂଗ୍ରହ | ଟ ୦୯୯ |
| ପରମାତ୍ମପ୍ରବନ୍ଧ | ଟ ୦ / |
| ନୀତିପତ୍ରିକା ୧ ମ | ଟ ୦ / |
| ଏକାନ ୨ ୟ | ଟ ୦ / |
| ନୀତିନିର୍ମାଲ୍ୟ | ଟ ୦୯୯ |
| ଯଜ୍ଞୋପବୀତବଧ | ଟ ୦ ୯୯ |
| ମୋହମୁଦ୍ଗର | ଟ ୦ ୯୬ |
| ସନ୍ଧ୍ୟାପ୍ରଦୀପ | ଟ ୦ /୬ |
| ଇନ୍ଦ୍ରଜାଲକୌତୁକ | ଟ ୦ ୯୯ |
| ଭଗବନ୍ନାକର | ଟ ୦ / |
| ଭଜନଚନ୍ଦ୍ରିକା | ଟ ୦ / |
| ପ୍ରାତଃସ୍ମରଣ | ଟ ୦ / |
| ନୀଳକଣ୍ଠ ୩୪ ଶା | ଟ ୦ ୯୯ |
| ଚନ୍ଦ୍ରଦୂତ ୩୪ ଶା | ଟ ୦ ୯୯ |
| ମାନଭଞ୍ଜ ୩୪ ଶା | ଟ ୦ ୯୬ |
| ପ୍ରବାଦପୁଷ୍ପାଞ୍ଜଳି | ଟ ୦ /୬ |
| ପଦ୍ୟମାଳା ୧ ମ | ଟ ୦ / |
| ଏକାନ ୨ ୟ | ଟ ୦ / |

ମେନେଜର—ମର୍ଦ୍ଦରାଜ ପ୍ରେସ
ରମ୍ଭା, ରମ୍ଭା ପୋଃ, ଗଞ୍ଜାମ ।